ନବସାକ୍ଷର ସାହିତ୍ୟମାଳା

# ଧନୁ, ଫୁଲଜାନୀ ଓ ଲୁହାପଥର

ବଂଶୀଧର ପୃଷ୍ଟି

ରବିନାରାୟଣ ରଥ

ଅଳଂକରଣ

ଶୈବାଳ ଚାଟର୍ଜ୍ଜୀ

ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

Digitized by srujanika@gmail.com

ଏହି ପୁସ୍ତକଟି ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ ଓ ନ୍ୟାଚୁରାଲ୍ ରିସୋର୍ସସ୍ ଡେଭଲପମେଣ୍ଟ ଫାଉଣ୍ଡେସନ୍, ଭୁବନେଶ୍ୱରଙ୍କ ମିଳିତ ଆନୁକୂଲ୍ୟରେ ଅନୁଷ୍ଠିତ କର୍ମଶାଳାରେ ପ୍ରସ୍ତୁତ କରାଯାଇଛି ।

ISBN 81 - 237 - 2969 - 3

1999 (ଶକାବ୍ଦ 1921)

© ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, 1993

Dhanu, Phulajani O Luhapathar *(Oriya)*

ଟ. 7.00

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ - 5, ଗ୍ରୀନ୍ ପାର୍କ,
ନୂଆଦିଲ୍ଲୀ- 110 016 କର୍ତ୍ତୃକ ପ୍ରକାଶିତ ।

Digitized by srujanika@gmail.com

# 1

ଦଶବରଷ ପରେ ଧନୁ ତା' ଗାଁକୁ ଆସୁଥିଲା । ଜାମସେଦପୁରରେ ପାଠ ପଢ଼ି ସେଇଠି ଟାଟା କଂପାନୀରେ ଚାକିରୀ କଲା । ମଝିରେ ଆଉ କେବେ ବି ଗାଁକୁ ଆସିନଥିଲା ।

ସହରୀ ବାତାବରଣର କେଁ ଭେଁ ଭିତରେ ତାକୁ ଅଣନିଃଶ୍ୱାସୀ ଲାଗୁଥିଲା । ତହିଁକି ଥରକୁ ଥର ଗାଁ ମାଟି ମନେ ପଡ଼ିଲା । ଆଉ ତାକୁ ରଖେ କିଏ ? ଛୁଟି ନେଇ ଗାଁକୁ ଧାଇଁଛି । ଜିପ୍‌ରେ ବସି ଧନୁ ଚାରିପାଖକୁ ଦେଖୁଥିଲା । ଦୁଇପାଖରେ ଖାଲି ଜଂଗଲ ।

ଏଇ ଦଶବର୍ଷ ଭିତରେ ଅନେକ କିଛି ବଦଳି ଯାଇଛି । ଯେଉଁଠି ଜଂଗଲ ଥିଲା ଜାଗା ଜାଗାରେ ପକ୍‌କା ଘରସବୁ ଠିଆ ହୋଇଛି । ମାଟିଘର ଆଉ ନାହିଁ । ଏଇ ଜଂଗଲ ପଛପଟେ ଠାକୁରାଣୀ ପାହାଡ଼ । ସେଥିରେ ଲୁହା ରହିଛି । ପାହାଡ଼ର ରୂପ ବି ବଦଳି ଗଲାଣି । ଆଗରୁ ପାହାଡ଼ର ଉପରଟା ଗୋଲିଆ ଦିଶୁଥିଲା, ଏବେ ସେଇଟି ସମତଳ ହୋଇଗଲାଣି । କଚ୍ଚା ଲୁହାପଥର ପାହାଡ଼ରୁ ଖୋଳିନେବା ପରେ ଏପରି ହୋଇଯାଇଛି । ଏଇ ପାହାଡ଼ରୁ କେତେଯେ ଲୁହାପଥର ଖୋଳାଗଲାଣି ତା'ର ହିସାବ ନାହିଁ । ସେଇଥିରୁ ଲୁହା ତିଆରି ହୁଏ । ଦା, ପନିକି, କୋଡ଼ି, କୁରାଢ଼ିଠାରୁ ନେଇ କଳ କାରଖାନା ଯାଏଁ ସବୁତ ଏଇ ଲୁହାରୁ ତିଆରି । ଦେଶ ବିଦେଶକୁ ମଧ୍ୟ ଏଇ କଚ୍ଚା ଲୁହାପଥର ପଠାଯାଏ ।

ଜିପ୍ ଆସି ଗାଁ ପାଖରେ ପହଂଚିଲା । ସେଠାରେ ଗୋଟିଏ ଭଲ ସ୍କୁଲ ତିଆରି ହୋଇଛି । ସ୍କୁଲରେ ବେଶ୍‌କିଛି ପିଲା ପାଠ ପଢୁଥିଲେ । ଧନୁ ଗାଡ଼ିରୁ ବାହାରିଲା । ସ୍କୁଲର ଶିକ୍ଷକ ତାକୁ ଅନାଇ ରହିଥିଲେ । ପିଲାମାନେ ତା'ର ଗାଡ଼ିକୁ ଘେରିଗଲେ । ତାଂକ ଭିତରୁ ଜଣେ ଅଧେ ଗାଡ଼ିକୁ ଟିକିଏ ସାଉଁଳେଇ ଦେଉଥିଲେ । ଆଖପାଖରୁ ଆହୁରି ଅନେକ ଲୋକ

Digitized by srujanika@gmail.com



ସ୍କୁଲକୁ ଦେଖି ଧନୁ ବି ଖୁସି ହେଲା । ଯାହାହେଉ, ଆଉ ଗାଁର ପିଲାମାନେ ଅପାଠୁଆ ରହିବେ ନାହିଁ ।

Digitized by srujanika@gmail.com

ଆସିଗଲେ । ସଭିଏଁ ଧନୁକୁ ଜାଣିଲେ । ଧନୁ ପ୍ରଣାମ କଲା । ଗାଁ ଲୋକମାନେ ତା'ର ମରିବାର ହାଲଚାଲ ପଚାରିଲେ । ସ୍କୁଲକୁ ଦେଖି ଧନୁ ବି ଖୁସି ହେଲା । ଯାହାହେଉ, ଆଉ ଗାଁର ପିଲାମାନେ ଅପାଠୁଆ ରହିବେ ନାହିଁ । ଜିପ୍ ପାଖରେ ଥାଇ ପିଲାମାନେ ଥରେ ଗାଡ଼ିକୁ ଓ ଥରେ ଧନୁକୁ ଦେଖୁଥାଆନ୍ତି । ଗାଡ଼ିରେ ବସାଇ ସେ ପିଲାମାନଙ୍କୁ ଘେରାଏ ଲେଖାଁ ବୁଲାଇ ଆଣିଲା । ପିଲେ ଖୁବ୍ ଖୁସି...

ଧନୁ ଆସିବା ଖବର ସାଥେ ସାଥେ ଗାଁରେ ସମସ୍ତେ ଜାଣିଗଲେ । ସେମାନଂକର ଖୁସିର ସୀମା ନଥାଏ । ଅନେକ ଲୋକ ଧନୁକୁ ଦେଖିବାକୁ ଧାଇଁଲେ । ସେଇଦିନ ସଂଜବେଳେ ଗାଁ ପଡ଼ିଆରେ ଧାଂଗଡ଼ା ଧାଂଗଡ଼ୀ ନାଚର ଆୟୋଜନ ହେଲା । ଗାଁର ସବୁ ଯୁବକଯୁବତୀ ଏକାଠି ହେଲେ । ନାଗରା ବାଜିଲା । ଧନୁ ବି ନାଚିବାକୁ ବାହାରିଲା । ହେଲେ ସାଥିରେ କେଉଁ ଧାଂଗଡ଼ୀ ନାଚିବ ? ସଭିଂକୁ ଡ଼ର । ସଭିଏଁ ତାକୁ ବଡ଼ ଅଫିସର ଜାଣିଥିଲେ । ତା ସହିତ ନାଚିବାକୁ କେହି ଆଗଭର ହେଲେ ନାହିଁ । ନାଚ କିମିତି ହେବ ? ନାଗରା ବାଜା ବି ବଂଦ ହୋଇଗଲା । କେହି ଆଗଭର ହେଲେ ନାହିଁ । ସେ ଘଟଣାଟି ବୁଝିଗଲା । ତା' ମଥାକୁ ଉପାୟଟିଏ ଆସିଲା ।

ମୁଁହ ଶୁଖାଇ ଅଭିମାନ କରି ସେ କହିଲା, ''ତୁମେମାନେ ମୋତେ ବୋଧେ ନିଜଲୋକ ବୋଲି ଭାବୁନାହଁ । ସେଥିପାଇଁ ମୋ ସହିତ କେହି ନାଚିବାକୁ ରାଜି ହେଉନାହଁ । ହଉ... କେହି ନ ଆସ.. ତୁମରି କଥା ହେଉ... ମୁଁ ତ ଏକୁଟିଆ ଥିଲି... ଏକା ଏକା ରହିବି... ।'' ଏତିକି କହୁ କହୁ ତା'ର ଆଖି ଛଳ ଛଳ ହୋଇଗଲା ।

ଧନୁର କଥାପଦକ ଯେମିତି କିମିଆ ପରି କାମକଲା । ଭିଡ଼ ଭିତରୁ ଧାଂଗଡ଼ୀଟିଏ ଦୌଡ଼ି ଦୌଡ଼ି ଆସି ଧନୁ ଅଂଟାରେ ହାତ ପକାଇଲା । ଧନୁର ମନ ପୂରି ଉଠିଲା । ମୁରୁକି ହସି ଧନୁ ତା'ଆଡ଼କୁ ଦେଖିଲା । ତାକୁ ଏଇ ଷୋହଳ କି ସତର ହେବ । ସ୍କୁଲରେ ପଢ଼େ । ବେଶ୍ ବୁଦ୍ଧି ଥିଲା ପରି ଲାଗୁଥିଲା । ଧନୁ ବି ତା ଅଂଟାରେ ହାତ ରଖିଲା । ପୁଣିଥରେ ନାଗରା ବାଜି ଉଠିଲା । ସଭିଏଁ ତାଳରେ ତାଳ ମିଶାଇ ଖୁସିରେ ନାଚି ଉଠିଲେ । ନାଚ ଭିତରେ ଧାଂଗଡ଼ୀକୁ ଧନୁ ପଚାରିଲା, ''ତମ ନାଁ କ'ଣ ?'' ଧାଂଗଡ଼ୀ ଲାଜମିଶା ଗଳାରେ କହିଲା ''ଫୁଲଜାନୀ' ।



Digitized by srujanika@gmail.com

# 2

ତହିଁ ଆରଦିନ ସକାଳୁ ଧନୁ ସ୍କୁଲ୍‌ଆଡ଼େ ବାହାରିଲା । ଶିକ୍ଷକ ମହାଶୟ ଖୁବ୍ ଆଦର କଲେ । ଛାତ୍ରଛାତ୍ରୀମାନେ ଧନୁକୁ ଏକରକମ ଘେରିଗଲେ । ଶିକ୍ଷକଙ୍କୁ ଅନୁରୋଧ କରି ଧନୁ କହିଲା, ''ନିକଟରେ ଛୋଟବଡ଼ ଅନେକ ଲୁହାଖଣି ଅଛି । ମୁଁ ସେଗୁଡ଼ିକ ଦେଖିବାକୁ ଯିବି । ମୋ ସାଥିରେ ଯଦି କେତେକ ଛାତ୍ରଛାତ୍ରୀଙ୍କୁ ଛାଡ଼ିବେ... ।'' ଛାତ୍ରଛାତ୍ରୀଙ୍କ ପ୍ରତି ଧନୁର ଆଗ୍ରହ ଦେଖି ଶିକ୍ଷକ ମହାଶୟ ଖୁସି ହେଲେ । ପିଲାମାନେ ଯିବାପାଇଁ ଅନୁମତି ମିଳିଗଲା । ଏକଥା ଶୁଣି ଫୁଲଝାନୀର ମନ ଖୁସିରେ ନାଚି ଉଠିଲା । ସେ ଦିନର ନାଚ ପରେ ଫୁଲଝାନୀ ଯେମିତି ପାଗଳୀ ହୋଇଯାଇଥିଲା । ଧନୁଠାରୁ କରଛଡ଼ା ହେବାକୁ ସେ ଜମା ଚାହୁଁ ନଥିଲା । ଧନୁର ସବୁକଥା ସେ ଅମୃତପରି ପିଇଯାଉଥିଲା ।

ଶିକ୍ଷକ କହିଲେ, ଧନୁବାବୁଙ୍କ ସହିତ ଦଶଜଣ ଯିବେ । ଫୁଲଝାନୀ ଛାତିଭିତରେ ଦୁକ୍‌ଦୁକ୍ ହେବାରେ ଲାଗିଲା । ଶିକ୍ଷକ ଜଣ ଜଣକରି ନାମ ପଢ଼ିଲେ । ଯାହା ନାମ ପଢ଼ାଗଲା, ସେ ଖୁସିରେ ଯାଇ ଜିପ୍‌ରେ ବସିଲା । ଜଣ ଜଣକରି ନ'ଜଣ ଗାଡ଼ି ଭିତରେ ବସିଲେଣି । ତଥାପି ଫୁଲଝାନୀର ନାଁ ପଡ଼ିଲାନି । ଦୁଃଖରେ ସେ ଝାଉଁଳି ପଡ଼ିଲା । ଏଇ ସମୟରେ ଶିକ୍ଷକ କହିଲେ, ''ଏହି ନଅଜଣ ପୁଅଝିଅଂକ ମନିଟର ହେବ ଫୁଲଝାନୀ ।'' ଆଃ... କି ଖୁସି ! ଫୁଲଝାନୀକୁ ମନେହେଲା ଯେପରି ଆକାଶର ଚାଂଦ ତା' ହାତରେ ଖସିପଡ଼ିଛି । ଡ଼େଣା ମେଲେଇ ସେ ଯେପରି ଆକାଶରେ ଉଡ଼ିଯାଉଛି । ଖୁସିରେ ତା'ର ଗୋଡ଼ ତଳେ ପଡୁନଥାଏ । କିଛି ସମୟ ପରେ ଧନୁ ସେମାନଙ୍କୁ ନେଇ ଖଣି ଦେଖିବାକୁ ଗଲା ।

Digitized by srujanika@gmail.com

ପ୍ରାୟ ଦେଢ଼, ଦୁଇ କିଲୋମିଟର ରାସ୍ତା ପାରହେଲେ ଠାକୁରାଣୀ ଖଦାନ । ସେଇ ଖଣିରେ ଧନୁ ଗାଁର ଅନେକ ଲୋକ କାମ କରୁଥିଲେ । ସଭିଏଁ ଏଇ ପିଲାମାନଙ୍କୁ ଜାଣିଥିଲେ । ପିଲାମାନେ ଧନୁକୁ ନେଇ ଲୋକମାନଂକ ସହିତ ପରିଚିତ କରାଇଦେଲେ । ଧନୁ ସମସ୍ତଂକ ସହିତ ଦୁଃଖସୁଖ କଥା ହେଲା । ପୁଣି ସଭିଏଁ ଖଣିଆଡ଼କୁ ଚାଲିଲେ । ଫୁଲଜାନୀ ଧନୁକୁ ପଚାରିଲା, ''ଏ ସହରୀବାବୁ ! ତମେ ତ ବହୁତ ପାଠ ପଢ଼ିଛ । ଖଣିର ସାହେବ ହୋଇଛ । ଆମକୁ ଟିକିଏ ଲୁହା କାରଖାନା କଥା କହୁନ ?'' ଆଉ ସବୁ ପିଲାଏ ପାଳି ଧରିଲେ, ''ହଁ, ହଁ, ଲୁହା କାରଖାନା କଥା କୁହ... ।''

ପିଲାମାନଙ୍କ ଆଗ୍ରହ ଦେଖି ଧନୁ କହିଲା, ''ଦେଖ, ଏଇସବୁ ପାହାଡ଼ରୁ ଯେଉଁ ଲାଲ୍‌ପଥର ଖୋଳାଯାଏ, ସେଥିରେ ଲୁହା ଅଂଶ ରହିଛି । କାରଖାନାରେ ଏହା ସହିତ କୋଇଲା ଆଉ ଚୁନପଥର ମିଶାଇ ତରଳାଯାଏ । ସେଥିରୁ କଚ୍ଚାଲୁହା ବାହାରେ । ସେଇ ଲୁହାରେ କରେଇ, ଲୁହା ବାଲ୍‌ଟି ଆଦି ତିଆରି ହୁଏ ।''

ଧନୁ ଦେଖିଲା, ତା'କଥାକୁ ଫୁଲଜାନୀ ଖୁବ୍ ମନଦେଇ ଶୁଣୁଛି । ତା'ର ଆଖି ପତା ପଡୁନି । ଫୁଲଜାନୀର ପିଠି ଥାପୁଡ଼େଇ ଆଦରରେ ଧନୁ ପଚାରିଲା, ''ବୁଝିଲୁ ?'' ଫୁଲଜାନୀର ସାରା ଦେହରେ ପୁଲକ ଖେଳିଗଲା । ସେ କହିଲା, ''ହଁ, ଆମେ ବୁଝିଲୁ ଯେ, ଆମକୁ ଆହୁରି ସବୁକଥା କହିବ... ।'' ଏତିକି କହି ଫୁଲଜାନୀ ଧନୁର ଆହୁରି ପାଖକୁ ଲାଗିଆସିଲା ।

ଧନୁ ପୁଣି ଥରେ କହିବାକୁ ଲାଗିଲା, ''ଯେଉଁ କଚ୍ଚାଲୁହା କଥା କହୁଥିଲି, ସେଥିରେ ମାଂଗାନିଜ୍ ଆଦି ମିଶାଇ ଅନେକ ପ୍ରକାରର ଇସ୍‌ପାତ ତିଆରି କରାଯାଏ । ଇସ୍‌ପାତ ଆମର ବହୁତ କାମରେ ଲାଗେ । ଲୁହାଠାରୁ ବି ସିଏ ଅଧିକ ମଜବୁତ । ଇଂରାଜୀରେ ଏହାକୁ ହିଁ ଷ୍ଟିଲ୍ କୁହାଯାଏ । ଲୁହାରେ ଖୁବଶୀଘ୍ର ଜଂକ୍ ଲାଗିଯାଏ, କିଂତୁ ଇସ୍‌ପାତରେ ଜଂକ୍ ଲାଗେ ନାହିଁ ।''



Digitized by srujanika@gmail.com




ଲୁହାରୁ ଇସ୍ପାତ କେମିତି ହୁଏ

ପିଲାମାନଙ୍କ ଭିତରୁ ଜଣେ ପଚାରିଲା, ''ସାର୍ ! ଏଇ ମାଂଗାନିଜ୍‌ଟି କ'ଣ, ଆମେ ବୁଝିପାରିଲୁନି ।''

ଧନୁ କହିଲା, ''ଏଇଟି ବି ଗୋଟିଏ ଦରକାରୀ ଧାତୁ । ଠିକ୍ ଲୁହା ଆଉ ଇସ୍ପାତ ପରି । ମାଂଗାନିଜ୍ ଧାତୁର ପଥର ବି ଏଇ ଅଂଚଳରେ ବହୁତ ରହିଛି । ଏଇ ପଥର ଲୁହାପଥର ପରି ଲାଲ୍ ନୁହେଁ କି ମଜବୁତ ନୁହେଁ । ଏଇଟି ଖୁବ୍ ନରମ ଓ ଏହାର ରଂଗ କଳା ବା ନେଳିଆ । ମାତ୍ର ଲୁହା ସହିତ ମିଶିଗଲେ ଇଏ ଆଉ ନରମ ରହେନି ।



Digitized by srujanika@gmail.com

ଇସ୍‌ପାତପରି ମଜବୁତ ଜିନିଷ ତିଆରି ହୁଏ ।''

ଫୁଲଜାନୀର ଆଖି ଝଲସି ଉଠିଲା । ଏଇ ମଉକା ଦେଖି ସେ ପଚାରିଲା, ''ଏତେ ସବୁ କଥା ଆମେ ତ କେବେ ବି ଜାଣିନଥିଲୁ । ଏବେ ଆମକୁ ଲୁହାପଥର ବିଷୟରେ କୁହ ନା ।''

ଦୁଇଟି କାରଣରୁ ଧନୁକୁ ବେଶ୍ ମଜା ଲାଗୁଥିଲା । ଏକରେ ସବୁପିଲା ତା'କଥାକୁ ଖୁବ୍ ମନଦେଇ ଶୁଣୁଥିଲେ । ଆଉ ଦୁଇରେ, ଫୁଲଜାନୀ ଧୀରେ ଧୀରେ ତା'ର ନିକଟକୁ ଲାଗିଆସୁଥିଲା । କଥାର ଖିଅଧରି ସେ ପୁଣି କହିଚାଲିଲା, ''ଦେଖ, ଲୁହାପଥର ଦୁଇଭଳି । ଗୋଟିଏ ହେମାଟାଇଟ୍ ଓ ଆରଟି ମେଗ୍ନେଟାଇଟ୍ । ହେମାଟାଇଟ୍ ପଥରର ରଂଗ ଲାଲ୍ । ଏଥିରେ ତିନିଭାଗରୁ ଦୁଇଭାଗ ଲୁହା ଥାଏ । ମେଗ୍ନେଟାଇଟ୍ ପଥରର ରଂଗ କଳା । ଏଥିରେ ମୋଟ ଚାରି ଭାଗରୁ ତିନି ଭାଗ ଲୁହା ଅଂଶ ଥାଏ ।''

ଟିକିଏ ରହି ପିଲାଙ୍କୁ ପରୀକ୍ଷା କରିବା ପାଇଁ ଧନୁ ପଚାରିଲା, ''ଆଚ୍ଛା କହିପାରିବ, ଆମ ଠାକୁରାଣୀ ପାହାଡ଼ ଲାଲ୍ କାହିଁକି ଦିଶେ ?'' ଜଣେ କହିଲା, ''ଏଥିରେ ପରା ହେମାଟାଇଟ୍ ପଥର ଅଛି ।''



ହେମାଟାଇଟ୍



ମେଗ୍ନେଟାଇଟ୍

ଲୁହାପଥର ଦୁଇଭଳି । ଗୋଟିଏ ହେମାଟାଇଟ୍ ଓ ଆରଟି ମେଗ୍ନେଟାଇଟ୍ ।



Digitized by srujanika@gmail.com

ଉତ୍ତର ଶୁଣି ଧନୁ ଖୁସିହେଲା । କହିଲା, ''ବାଃ, ଠିକ୍ ମନେରଖିଛ ତ ! ଆଚ୍ଛା କଳାରଂଗର ଲୁହାପଥର...''

ତା'କଥା ନସରୁଣୁ ଫୁଲଜାନୀ କହିଲା, ''କଳାରଂଗର ଲୁହାପଥରକୁ ମାଗ୍ନେଟାଇଟ୍ କୁହାଯାଏ । ସେଥିରେ ତିନିଭାଗ ଲୁହା ଅଂଶ ଥାଏ । ଠିକ୍ କହିଛିନା ?'' ଫୁଲଜାନୀର କଥାରେ ଧନୁ ନହସି ରହିପାରିଲାନି । ତେବେ ପିଲାମାନେ ଯେ ଭଲ ମନେ ରଖିପାରିଛନ୍ତି ଜାଣି ସେ ଖୁବ୍ ଖୁସି ହେଲା । ଧନୁ କହିଲା, ''ବୁଝିଲ ପିଲେ, ଲୁହାପଥର ବିଷୟରେ ଯେତେ କହିଲେ ବି କଥା ତ ସରିବନି । ତେବେ ଏତିକି ମନେରଖ ଯେ, ଆମ ଦେଶରେ ଲୁହାପଥର ବହୁତ ପରିମାଣରେ ଭରି ରହିଛି । ଆଜିକାଲି ଏହାର ଖରଚ ବି ବଢ଼ି ବଢ଼ି ଚାଲିଛି । ଧୀରେ ଧୀରେ ଏପରି ସମୟ ଆସିବ ଯେ, ସବୁତକ ଲୁହାପଥର ଶେଷ ହୋଇଯିବ । ଗଛଲତାପରି ଏହାକୁ ଅମଳ କରିହୁଏ ନାହିଁ । ତେଣୁ ଏହି ବିଷୟରେ ଲୋକମାନେ ଏବେଠାରୁ ସଚେତନ ହେବା ଦରକାର ।''

ପିଲାମାନେ ସଭିଏଁ ଏକାଠି ପଚାରିଲେ, ''ଏଇ ଖଣିଗୁଡ଼ିକ ତା'ହେଲେ କେଉଁଠି ଅଛି ?''

ଧନୁ ଖୁସିରେ କହିଲା, ''କେଉଁଝର ଓ ସୁନ୍ଦରଗଡ଼ ଜିଲାର ଠାକୁରାଣୀ, ନୂଆମୁଣ୍ଡି, ବଲାଣି, କିରିବୁରୁ, ବରସୁଆଁ ଆଉ ଯୋଡ଼ାରେ ଲୁହାପଥର ଖଣି ଅଛି । ଗୋରୁମହିଷାଣୀ, ବାଦାମପାହାଡ଼, ଦଇତାରୀଆଦି ପାହାଡ଼ମାନଙ୍କରେ ବି ପ୍ରଚୁର ଲୁହା ମହଜୁଦ ଅଛି । ସେଥିପାଇଁ ରାଉରକେଲା ଇସ୍‌ପାତ କାରଖାନା ପରେ ବି ଆହୁରି କାରଖାନା ଦରକାର ପଡ଼ୁଛି । ବିହାର, ମଧ୍ୟପ୍ରଦେଶ, ଗୋଆ ଓ କର୍ଣ୍ଣାଟକରେ ବି ଲୁହାପଥର ଖଣି ଅଛି । ଆମ ଦେଶରୁ ଲୁହାପଥର ବିଦେଶକୁ ବି ପଠାଯାଏ ।''

ଏତିକି କହିବା ପରେ ହଠାତ୍ ପିଲାଦିନ କଥା ଧନୁର ମନେପଡ଼ିଲା । ଭାବନାରେ ସେ ବୁଡ଼ିଗଲା । ସେ ମଉନ ହୋଇଯିବାର ଦେଖି ପିଲାମାନେ ପଚାରିଲେ, ''କ'ଣ ହେଲା ? ଆପଣ ଚୁପ୍ ହୋଇଗଲେ କାହିଁକି ?''



Digitized by srujanika@gmail.com

ଧନୁ ଧୀର ଗଳାରେ କହିଲା, ''ନାଇଁ, କିଛି ନାହିଁ । ପୁରୁଣା କଥାଗୁଡ଼ାକ ମନେପଡ଼ିଗଲା । ଏବେ ତ ଆଉ ସେଦିନ ନାହିଁ । ଏବେ କେତେ ଭଲ ହୋଇଗଲାଣି । ଆମ ପିଲାବେଳେ ଏଇ ପଥରର ଲାଲ୍ ଲାଲ୍ ଧୂଳି ଏତେ ଉଡୁଥିଲା ଯେ, ସେସବୁ ଲୋକମାନଙ୍କ ଫୁସ୍‌ଫୁସ୍ ଭିତରକୁ ଚାଲିଯାଉଥିଲା । ଲୋକେ ରୋଗରେ ପଡୁଥିଲେ । ମୁଁ ସେତେବେଳେ ଖୁବ୍ ଛୋଟ ଥିଲି । ମୋର ବାପା-ମା ଦୁହେଁ ଖଣିରେ କାମ କରୁଥିଲେ । ଏଇ ପ୍ରକାର ରୋଗରେ ପଡ଼ି ମୋ ମା ମରିଗଲା । ଏବେ ତ ଡ଼ିନାମାଇଟ୍ ଲଗାଇ ପଥର ଭଙ୍ଗାଯାଉଛି । ଆଗପରି ଆଉ ଗଛପତ୍ର କାଟିବା ଦରକାର ପଡୁନି । ଗଛ ନ କାଟିବା ପାଇଁ ସରକାରୀ ଆଦେଶ ବି ରହିଛି । ଧୂଳି ଯେପରି ନ ଉଡ଼ିବ ସେଥିପାଇଁ ସଭିଏଁ ସାବଧାନ ହେଉଛନ୍ତି । ଯେଉଁଠି ଟ୍ରକ ଓ ଡଂପର ଚାଲୁଛି , ସେଠାରେ ଅନବରତ ପାଣି ଢ଼ଳାଯାଉଛି । ଫଳରେ ଧୂଳି ଉଡୁନି କି ଲୋକଙ୍କୁ ଧୂଳିଯୋଗେ ରୋଗ ହେଉନି । ଖଣିରେ କାମ କରୁଥିବା ଲୋକଂକ ମୁଂଡ଼ରେ ଲୁହାଟୋପି, ଗୋଡ଼ରେ ଯୋତା, ଆଖିରେ ଚଷମା ଇତ୍ୟାଦି ସବୁ ସୁରକ୍ଷା ବ୍ୟବସ୍ଥା ରହିଛି । ଏହା ଦେଖି




ଯେଉଁଠି ଟ୍ରକ ଓ ଡଂପର ଚାଲୁଛି, ସେଠାରେ ଅନବରତ ପାଣି ଢ଼ଳାଯାଉଛି ।



Digitized by srujanika@gmail.com



ଖଣିରେ କାମ କରୁଥିବା ଲୋକଙ୍କ ମୁଣ୍ଡରେ ଲୁହାଟୋପି, ଗୋଡ଼ରେ ଯୋତା, ଆଖିରେ ଚଷମା ଇତ୍ୟାଦି ସବୁ ସୁରକ୍ଷା ବ୍ୟବସ୍ଥା ରହିଛି ।

ଖୁବ୍ ଭଲ ଲାଗୁଛି... ଜାଣିଛ, ମା' ମଲାପରେ ମୁଁ ଶପଥ କରିଥିଲି ଯେ ବହୁତ ପାଠ ପଢ଼ି ଦିନେ ଏଇ ଖଣିରେ ବଡ଼ ଅଫିସର ହେବି । ତମେମାନେ ବି ବହୁତ ପାଠ ପଢ଼ । ବଡ଼ ମଣିଷ ହୁଅ । ମୋ ସମୟରେ ଭଲ ସ୍କୁଲଟିଏ ବି ନଥିଲା... ।''



Digitized by srujanika@gmail.com

ପିଲାମାନେ ପଚାରିଲେ, ''ତାହେଲେ ପାଠପଢ଼ିଲେ ଆମେ ବି ବଡ଼ ଅଫିସର ହୋଇପାରିବୁ ?''

ଧନୁ କହିଲା, ''ହଁ, ଅଲବତ୍ ହେବ । ଏଇ ଦେଖ, ବରଷା ହେଲେ ପାଣିର ଯେଉଁ ଅଂଶ ତଳକୁ ଯାଏ, ସେଥିରେ ଲୁହାର ଅନେକ ଅଂଶ ରହିଥାଏ । ସେଇ ପାଣି ଧାନଜମିରେ ପଶିଲେ ଯେ କ୍ଷେତ ଖରାପ ହେବ ।''

ଖଣିର ଗଡ଼ାଣିଆ ପାଖକୁ ଦେଖେଇ ସେ ପୁଣି କହିଲା, ''ହେଇ ଦେଖ, ସେ ପାଖକୁ ପାଣିକୁ ଛାଡ଼ିଦିଆ ଯାଉଛି । ସେହି ପାଣି ଖୋଲା ପଡ଼ିଆ ଅବା ଖାତ ଭିତରେ ପଡ଼ିବ । ଲୁହାଅଂଶ ଭାରୀ ହୋଇଥିବାରୁ ସିଏ ତଳେ ବସିଯିବ । ତା'ପରେ ପାଣି ଯାଇ ନାଳରେ ମିଶିବ । ଏହି ପାଣି କ୍ଷେତକୁ ଗଲେ ଫସଲର କ୍ଷତି ହେବନି । ଆଗେ ଏଭଳି ହେଉନଥିଲା । ଫଳରେ ଅନେକ ଫସଲ କ୍ଷତି ହେଉଥିଲା । ଏବେ ମେସିନ୍ ଥିବାରୁ ଲୋକଙ୍କୁ ବହୁତ ସାହାଯ୍ୟ ମିଳୁଛି । କମ୍ ସମୟରେ ଅଧିକ ଆମଦାନୀ କରିବା ଦରକାର ପଡୁଛି । ସବୁ କାମ ତ ମଣିଷ ହାତରେ କରିବା...... ।''

ଏତିକିବେଳେ କଥା ମଝିରେ ଫୁଲଜାନୀ କହିଲା, ''ଏ ସହରୀବାବୁ ! ତମେ ତ ବହୁତ କଥା ଜାଣିଛ । ସେତିକିବେଳୁ ଗପୁଛ ଯେ, ତମ ପାଟି ବଥାହଉନି ? ସଂଜ ହେବାକୁ ବସିଲାଣି । କ'ଣ ଘରକୁ ଫେରିବନି କି ? ହଁ, ମୋତେ ଖାଲି ଗୋଟିଏ କଥା କହିଦିଅ । ଏଇ ଲୁହାପଥର ଦିହରେ ଏପରି ଅଂକାବଂକା ଗାରଗୁଡ଼ିକ କାଇଁକି ଥାଏ ? କହିସାରିଲେ ଘରକୁ ଫେରିବା ।''

ଆଉ ସବୁ ପିଲାଏ ଧନୁକୁ 'ସାର୍' ବୋଲି କହୁଥିଲେ ବି ଫୁଲଜାନୀର 'ଏ ସହରୀବାବୁ' ଡାକ ଧନୁକୁ ଖୁବ୍ ମିଠା ଲାଗୁଥିଲା । ଅନ୍ୟମାନଙ୍କର 'ଆପଣ' ଅପେକ୍ଷା ଫୁଲଜାନୀର 'ତୁମେ'ରେ ଅଧିକ ଆପଣାର ଭାବ ଥିଲା ।



Digitized by srujanika@gmail.com

## 3

ଫୁଲଢାନୀକୁ ଟିକିଏ ଚିଡାଇ ଧନୁ କହିଲା, ''ତୁମେ ତ ବେଶ୍ ଚାଲାକ୍ ! ଘରକୁ ବି ଯିବାକୁ ହେବ, ତୁମର ଦାବି ବି ପୂରଣ କରିବାକୁ ହେବ ।... ଆଚ୍ଛା ହଉ, ଶୁଣ, ଲୁହାପଥର ଉପରର ବଂକାଟଂକା ଗାରକଥା ପଚାରୁଥିଲ ପରା ।

ହଜାର ହଜାର ବରଷ ଆଗରୁ ଆମର ପୃଥିବୀ ଏପରି ନଥିଲା । ଏଇ ପାହାଡ଼ ଏମିତି ନଥିଲା । ଲୁହା ପଥର ଲୁହାଅଂଶ ଧୋଇ ହୋଇ ନଦୀ, ନାଳ ଦେଇ ସାଗରରେ ପଡୁଥିଲା । ପାଣି ଭିତରେ ବାଲି, ମାଟି ଓ ଲୁହାଅଂଶ ଥାକ ଥାକ ହୋଇ ଜମା ହେଉଥିଲା । ଏହି ଥାକଗୁଡ଼ିକ ହଜାର ହଜାର ଫୁଟ ଉଚ୍ଚା । ସେତେବେଳେ ପୃଥିବୀରେ ଘନଘନ ଭୂମିକଂପ ହେଉଥିଲା । ତାହାରି ଫଳରେ ଦୁଇଆଡ଼ୁ ଚିପିହୋଇ ଏହି ଥାକଗୁଡ଼ିକ ଉପରକୁ ଉଠିଯିବା ଫଳରେ ପାହାଡ଼ ତିଆରି ହେଲା । ପହିଲେ ପାଣି ଭିତରେ ଏମିତି ଥାକ ଥାକ ହୋଇ ତିଆରି ହୋଇଥିବାରୁ ଲୁହାପଥର ଉପରେ ଅଲଗା ଅଲଗା ଥାକର ଦାଗ ଦେଖାଯାଉଛି ।'' ଏତକ କହି ସେ ଫୁଲଢାନୀକୁ ପଚାରିଲା, ''କ'ଣ ବୁଝିଲ ତ ?''

ପିଲାମାନେ କହିଲେ, ''ଆଜି ଆମେ କେତେକଥା ଶିଖିଲୁ । ଆପଣ ଏଇ ଖଣିରେ କାମ କରିବା ପାଇଁ ଆସିଗଲେ ବହୁତ ମଜାହେବ । ଆମେ ଆହୁରି କେତେକଥା ଶିଖିପାରିବୁ ।''

ଧନୁ କହିଲା, ''ଆରେ, ନିଜ ଇଚ୍ଛାରେ ମୁଁ କ'ଣ ଏଠିକି ଆସିପାରିବି ? ଚାକିରୀ

Digitized by srujanika@gmail.com

କରିଛି ପରା ! ... ଚାଲ ଏଥର ଗାଁକୁ ଯିବା ! କାଲି ସକାଳୁ ପୁଣି ମତେ ଜାମ୍‌ସେଦପୁର ଫେରିଯିବାକୁ ପଡ଼ିବ । ଆଜି ସଂଜବେଳକୁ ପୁଣି ଅନେକ ଲୋକଙ୍କ ସହିତ ସାକ୍ଷାତ ଆଲୋଚନା କରିବାକୁ ଅଛି ।''

ଧନୁର ଶେଷ କଥାତକ ଶୁଣିବାପରେ ସଭିଂକ ମନ ଦୁଃଖରେ ଭରିଗଲା । ଫୁଲଜାନୀ ମୂକ ପାଲଟିଗଲା । ମୁହଁ ତା'ର ଶୁଖି କଳାକାଠ ପଡ଼ିଗଲା । ଗାଡ଼ିରେ ବସି ଗାଁକୁ ଫେରିବା ବାଟରେ ସେ ଉଁ କି ଚୁଁ କରିନାହିଁ । ଅନ୍ୟମାନେ ଯାହାକିଛି ପଦେଅଧେ ପଚରା ପଚରି କରୁଥିଲେ । ହେଲେ ଫୁଲଜାନୀ ଚୁପ୍ । ଧନୁ ପଚାରିଲା, ''କ'ଣ ହେଲା ଫୁଲ ? ଚୁପ୍ ହୋଇ ବସିଲ ଯେ ! କ'ଣ ମୋ' ଉପରେ ରାଗିଛ କି ?''

ଏଥର ଫୁଲଜାନୀ ପାଟି ଖୋଲି କହିଲା, ''ଆପଣ ତ ସହରୀ ସାହେବ୍ । ଆପଣଂକ ଉପରେ ରାଗିବି କାହିଁକି ? ଆପଣ କ'ଣ ଭୁଲ କରିଛନ୍ତି ଯେ ଆମେ ରାଗିବୁ । ସବୁ ଭୁଲ ତ ଆମର । ସେଇଥିପାଇଁ ଆମ ପାଖରେ ଦୁଇଦିନ ବି ରହିବାକୁ ଭଲ ଲାଗୁନି । ଆପଣ ଯଦି ଏଇ ଖଣିରେ ଅଫିସର ହୋଇ ଆସିବେ, ଏଠିକା ଲୋକେ କେତେ ଖୁସି ହେବେ ଭାବିଚଂତି କି ?'' ଅଭିମାନରେ ଏତକ କହି ଫୁଲଜାନୀ ତଳକୁ ମୁହଁ ପୋତିଲା ।

ମନିଟର ଫୁଲଜାନୀର କଥାରେ ଅନ୍ୟ ପିଲାମାନେ ପାଳିଧରି ବି ଜିଦ୍ କଲେ,

''ହଁ ସାର୍ ! ଆପଣ ଏଇ ଖଣିକୁ ଅଫିସର ହୋଇ ଆସିଗଲେ ଭଲ ହେବ...... ।''

ଫୁଲଜାନୀର ଅଭିମାନ ଓ ଅନ୍ୟ ସଭିଂକ ଅନୁରୋଧ ଭିତରେ ଧନୁ ବିଚାର କରୁଥିଲା । ପିଲାମାନଂକର ଆଗ୍ରହ ଆଉ ମାତୃଭୂମିର ଆକର୍ଷଣ, ତା ସାଂଗକୁ ପୁଣି ଫୁଲଜାନୀ ଚୁପ୍‌ଚାପ୍ ତା ଆଖିରେ କିଛି କହିବାକୁ ଚାହୁଁଛି... ସେ ଏବେ କ'ଣ କରିବ... ? କୁଆଡ଼େ ଯିବ... ।



Digitized by srujanika@gmail.com

